ISSN: 2456-9194, Vol. IV, Issue. II, Sept 2020


# ପ୍ରତ୍ୟୟ

(Journal of Odia Language, Culture and Science)

Journal Homepage: http://cphfs.in/research.php




# ଲକ୍ଷ୍ମୀନାରାୟଣଙ୍କ ଦୃଷ୍ଟିରେ କର୍ମବୀର ଗୋଖଲେ


**ଡକ୍ଟର ନମିତା ନାୟକ**

ଅଧ୍ୟାପିକା, ଗାୟତ୍ରୀ ବିଜ୍ଞାନ ମହାବିଦ୍ୟାଳୟ, ଭୁବନେଶ୍ୱର

Email: namitanayak1979@gmail.com



*ସାରମର୍ମ: ସାରସ୍ୱତ ସାଧକ ଲକ୍ଷ୍ମୀନାରାୟଣ ସାହୁଙ୍କ କର୍ମମୟ ଜୀବନ ଭିତରେ ସାହିତ୍ୟ ସାଧନା ଚିତ୍ତବିନୋଦନର ବିଳାସ ସାମଗ୍ରୀ ନଥିଲା। ସାହିତ୍ୟ ଥିଲା ତାଙ୍କ କର୍ମମୟ ଜୀବନର ପ୍ରତିଛବି । ବହୁ ଯୋଗଜନ୍ମା ପୁରୁଷଙ୍କ ଦ୍ୱାରା ସେ ପ୍ରଭାବିତ ହୋଇଥିଲେ ଓ ସେମାନଙ୍କ ଆଦର୍ଶମୟ ଜୀବନ ଧାରାକୁ ଅନୁସରଣ କରିଥିଲେ । କର୍ମବୀର ଗୋଖଲେ ପୁଣ୍ୟଭୂମି ଭାରତରେ ଜନ୍ମନେଇ ଜନ୍ମଭୂମିର ଗୌରବକୁ ବହୁଗୁଣିତ କରିଥିଲେ । ଗୋଖଲେଙ୍କ ଜୀବନୀ ହେଉଛି ତ୍ୟାଗ ଓ ଦାନର ଏକ ଅସରନ୍ତି ଭଣ୍ଡାର । ତାଙ୍କ ଆଦର୍ଶମୟ ଜୀବନ ଇତିହାସର ପୃଷ୍ଠାକୁ ଗୌରବାନ୍ୱିତ କରେ । ସମାଜରୁ କୁସଂସ୍କାରକୁ ଦୂର କରିବା, ଧର୍ମନାରେ ଅଧର୍ମକୁ ଧ୍ୱଂସ କରିବା, ଜନ୍ମ ଭୂମିର ସେବା କରିବା ଓ ସାମାଜିକ ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବାକୁ ସେ ପ୍ରୟାସ କରିଥିଲେ । ତାଙ୍କ ଅଧ୍ୟାପକ ଜୀବନରେ ଅନେକ ଛାତ୍ରଙ୍କୁ ସେହ୍ନ ଓ ଭାତୃତ୍ୱର ବନ୍ଧନରେ ବାନ୍ଧି ରଖୁଥିଲେ । ବାସ୍ତବରେ ଦେଖିଲେ ସେ ଥିଲେ ଗୁରୁଜଗତର ଆଦର୍ଶ ।*



*ମୂଳ ଶବ୍ଦ: ଲକ୍ଷ୍ମୀନାରାୟଣ ସାହୁ, ଗୋପାଳକୃଷ୍ଣ ଗୋଖଲେ, ଶିବାଜୀ, ଫାର୍ଗୁସନ କଲେଜ*


ପୃଥିବୀ ବକ୍ଷରେ ଅନେକ ମନୁଷ୍ୟ ଜନ୍ମ ନିଅନ୍ତି, ସେମାନଙ୍କ କର୍ମଜୀବନ ସମାପ୍ତ କରି ଶେଷରେ ବିଦାୟ ନିଅନ୍ତି । କିନ୍ତୁ ସମାଜରେ କେତେକ ମୁଷ୍ଟିମେୟ ମହାପୁରୁଷଙ୍କର ଆବିର୍ଭାବ ଘଟିଥାଏ, ଯେଉଁମାନେ ମୃତ୍ୟୁର ଗ୍ରାସରେ ବିଲୀନ ହେବାପରେ ଏକ ଅପୂରଣୀୟ ଶୂନ୍ୟତା ଛାଡ଼ି ଯାଇଥାନ୍ତି । ଲୋକସେବକ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଥିଲେ ସେହିପରି ଜଣେ ବ୍ୟକ୍ତି । ରାଜନୈତିକ ପ୍ରତିପତ୍ତି, ଅର୍ଥର ଦର୍ପ, ପାଣ୍ଡିତ୍ୟର ଅଭିମାନ ତାଙ୍କଠାରେ ନଥିଲା । ଏକାଧିକ ସ୍ନାତକୋତ୍ତର ଡିଗ୍ରୀ ହାସଲ କରି ମଧ୍ୟ ସେ ଥିଲେ ଠିକ୍ ଜଣେ ଗ୍ରାମ୍ୟ କୃଷକ ପରି । ବନ୍ୟା, ଦୁର୍ଭିକ୍ଷ, ମହାମାରୀର ତାଡ଼ନାରେ ସେ ଲୋକଙ୍କ ପାଖରେ ଉପସ୍ଥିତ ହେଉଥିଲେ । ରାଜନୀତିକ ମଞ୍ଚରେ ମଧ୍ୟ ତାଙ୍କୁ ଭାଷଣ ଦେଉଥିବାର ଦେଖିବାକୁ ମିଳୁଥିଲା । ବିଦଗ୍ଧ ସାହିତ୍ୟ ସମାଜରେ, ସଙ୍ଗୀତ ଆସରରେ, ଅଭିନୟ ମଞ୍ଚ ନିକଟରେ ମଧ୍ୟ ସେ ଦେଖାଯାଉଥିଲେ । ଯେଉଁଠି ପହଞ୍ଚୁଥିଲେ ଲୋକେ ସ୍ୱତଃପ୍ରବୃତ୍ତ ହୋଇ ଭକ୍ତି ଓ ଶ୍ରଦ୍ଧାର ସହ ତାଙ୍କୁ ପ୍ରଣାମ କରୁଥିଲେ । ସମସ୍ତଙ୍କୁ ପ୍ରତିନମସ୍କାର କରି କୁଶଳ କାମନା ସହ ସଦା ଚଳନଶୀଳ, ସମ୍ବେଦନଶୀଳ ଲକ୍ଷ୍ମୀନାରାୟଣ ବିଦାୟ ନେଉଥିଲେ ଲୋକଙ୍କ ପାଖରୁ । ସେ ପୁଣି ଥିଲେ ମହାନୁଭୂତିର ଏକ ସ୍ନିଗ୍ଧ ପ୍ରତିମା । ଅନନ୍ତ ଜ୍ଞାନପିପାସାର ଅଶାନ୍ତି ପ୍ରତିମୂର୍ତ୍ତି । ସର୍ବୋପରି ଅସାଧାରଣ ଭାବରେ ଏକ ସାଧାରଣ ମଣିଷ ମହାଭାରତୀୟ ସଂସ୍କୃତିର ଏକ ମୂର୍ତ୍ତିମନ୍ତ ପ୍ରତୀକ ।

ଜୀବନୀ ରଚନାର ଯାହା ଉଦ୍ଦେଶ୍ୟ, ସେହି ଉଦ୍ଦେଶ୍ୟରେ ହିଁ ଲକ୍ଷ୍ମୀନାରାୟଣ ଜୀବନଚରିତ ରଚନା କରିଥିଲେ । ବହୁ ଯୋଗଜନ୍ମା ସୁପୁରୁଷଙ୍କ ଦ୍ୱାରା ଲକ୍ଷ୍ମୀନାରାୟଣ ପ୍ରଭାବିତ ହୋଇଥିଲେ । ସେମାନଙ୍କ ଆଦର୍ଶରେ ସେ ଉଦ୍‌ବୁଦ୍ଧ ହୋଇଥିଲେ । ତାଙ୍କର ଏଭଳି ଲେଖା ସଂପର୍କରେ ଡ. ରମାକାନ୍ତ ବେହେରା ଲେଖିଛନ୍ତି-"ଜାତିସ୍ମର ମହାପୁରୁଷମାନଙ୍କ ପ୍ରତି ତାଙ୍କର ପ୍ରଗାଢ଼ ସମ୍ମାନ ଥିଲା, ନିଜେ ସେମାନଙ୍କ ଦ୍ୱାରା ଅନୁପ୍ରାଣିତ, ତାଙ୍କର ଲକ୍ଷ୍ୟ ଥିଲା ଯେଉଁମାନେ ଆମର ଉତ୍ତର ପୁରୁଷ - ଯେଉଁମାନେ ଆଜିର ଛାତ୍ର ଏବଂ ଭବିଷ୍ୟତ ନାଗରିକ - ସେମାନେ ମହାପୁରୁଷଙ୍କ ଜୀବନରୁ ଉଦ୍‌ବୁଦ୍ଧ ହୁଅନ୍ତୁ । ସେମାନଙ୍କର ଭବିଷ୍ୟତ ଉଜ୍ଜ୍ୱଳ ହେଉ ଏବଂ ଦେଶର ସାମଗ୍ରିକ କଲ୍ୟାଣ ସାଧିତ ହେଉ ।"(୧)

ଏ ସଂପର୍କରେ ଲକ୍ଷ୍ମୀନାରାୟଣଙ୍କ ଅଭିବ୍ୟକ୍ତି ହେଉଛି- ସବୁ ଦେଶରେ ସବୁ ଯୁଗରେ ଯୁବକ ହିଁ ଦେଶର ପ୍ରାଣ, ଯୁବକର ଶକ୍ତି ଏବଂ ଉତ୍ସାହ ହିଁ ଦେଶକୁ ସପ୍ତସ୍ୱର୍ଗକୁ ଉଠାଇଥାଏ ବା ସପ୍ତପାତାଳ ତଳେ ପକାଇଥାଏ । ଆଉ ବୃଦ୍ଧ, ସେ ତ ଜୀବନ ପଥରେ ଶେଷ ପଥିକ । ତା'ର ଜୀବନରେ ଥାଏ କେବଳ ଅତୀତର ସୁଖ ଦୁଃଖ, ଅତୀତର ଅଭିଜ୍ଞତା । କିନ୍ତୁ ଏହି ଅଭିଜ୍ଞତା

ଯୁବକର ଶକ୍ତି ସାମର୍ଥ୍ୟ ସହିତ ମିଳିତ ହେଲେ ସୁଫଳର ଆଶା ଅଧିକ । ବୃଦ୍ଧର ଅଭିଜ୍ଞତା ହିଁ ପ୍ରକାରାନ୍ତରେ ମହାପୁରୁଷଙ୍କର ଜୀବନଚରିତ, ଯାହାକି ପରବର୍ତ୍ତୀ ଦାୟାଦଙ୍କୁ ଦିଗ୍‌ଦର୍ଶନ ଦେଇଥାଏ । ସେହିପରି ଜଣେ ସଂଗ୍ରାମୀ ଥିଲେ କର୍ମବୀର ଗୋପାଳ କୃଷ୍ଣ ଗୋଖେଲ ।

ଲକ୍ଷ୍ମୀନାରାୟଣ ସାହୁଙ୍କ ପ୍ରଥମ ଜୀବନଚରିତ 'କର୍ମବୀର ଗୋଖେଲେ' । ଏଥିରେ ସେ ପ୍ରଥମେ ଭାରତମାତାର ବନ୍ଦନା ଗାନ କରିଛନ୍ତି । ଭାରତର ମହାନୀୟତାକୁ ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି । ସେହି ପୁଣ୍ୟଭୂମି ଭାରତରେ ଗୋଖଲେ ଜନ୍ମନେଇ, ଜନ୍ମଭୂମିର ଗୌରବକୁ ବହୁଗୁଣିତ କରିଛନ୍ତି ବୋଲି ସେ ଲେଖିଛନ୍ତି- "ଯେଉଁ ତ୍ୟାଗରୁ ବିରାଟ ମହାନ୍ ଆଦର୍ଶରେ ଭାରତର ଇତିହାସ ଗୌରବାନ୍ୱିତ, ଯେଉଁ ଦାନର ଉଦାର ପ୍ରଶାନ୍ତ ଆଦର୍ଶରେ ଭାରତ ଇତିହାସର ପ୍ରତିପୃଷ୍ଠ, ଝଲସିତ, ମହାମତି ଗୋଖଲେଙ୍କ ଜୀବନ ସେହି ତ୍ୟାଗରେ ମୁକୁଳିତ- ସେହି ଦାନରେ ପ୍ରସ୍ଫୁଟିତ । ସେ ତ୍ୟାଗରେ, ସେ ଦାନରେ ଅନୁତାପ ନାହିଁ, ଜ୍ୱାଳା ନାହିଁ; ସେ ତ୍ୟାଗର ଆଲୋକରେ ଚକ୍ଷୁ ଝଲସି ଯାଏନା, ତା'ର ସ୍ନିଗ୍‌ଧୋଜ୍ଜ୍ୱଳ ରଶ୍ମିରେଖା ପ୍ରାଣରେ କେବଳ ପ୍ରେରଣା ଆଣେ, ଜାଗରଣ ଆଣେ ।" (୨)

ଦ୍ୱିତୀୟ ପର୍ଯ୍ୟାୟ ବା ଦ୍ୱିତୀୟ ବିକାଶରେ, ମହାମତି ଗୋପାଳକୃଷ୍ଣ ଗୋଖଲେଙ୍କ ବ୍ୟକ୍ତିଗତ ଜୀବନକୁ ଆକଳନ କରିଛନ୍ତି । ସେହି ପ୍ରସଂଗରେ ଗୋଖଲେଙ୍କ ଜନ୍ମଭୂମି ମହାରାଷ୍ଟ୍ର ବନ୍ଦନା ଗାନ କରି ଲେଖିଛନ୍ତି- "ଯେଉଁ ମହାରାଷ୍ଟ୍ରରେ ଦିନେ ଶିବାଜୀ ସଦୃଶ ମହାପୁରୁଷ ଗୋଟିଏ ମାତ୍ର କଟାକ୍ଷରେ ବିଶାଳ ମୋଗଲ ସାମ୍ରାଜ୍ୟକୁ ଛାରଖାର କରି ନିଜର ବିଜୟ-ବୈଜୟନ୍ତୀ ଉଡ଼ାଇ ଦେଇଥିଲେ, ଯେଉଁ ମହାରାଷ୍ଟ୍ରରେ ଗିରିଗୁହା କନ୍ଦରର ଦେଶପ୍ରୀତିର ଅମୃତମୟୀ ରାଗିଣୀ, ସ୍ୱଦେଶ ବତ୍ସଳତାର ଅପୂର୍ବ କାହାଣୀ ପୁଞ୍ଜୀଭୂତ, ଗୋଖଲେ ସେହି ମହାରାଷ୍ଟ୍ର ସନ୍ତାନ ।" (୩)

ଗୋଖଲେ ଜନ୍ମ ସମୟରେ ଭାରତ ପରାଧୀନ, ପୁଣି ଭାରତୀୟ ଧର୍ମବିଜ୍ଞାନରେ ବିଜାତୀୟ ଜଡ଼ବାଦ ପ୍ରବେଶ କରିଥିଲା । ନାନା କୁସଂସ୍କାରରେ ସମାଜ ପରିପୂର୍ଣ୍ଣ ଥିଲା । ସେତେବେଳେ ଧର୍ମ ଓ ପୁଣ୍ୟର ସିଂହାସନରେ ବସିଥିଲା ଅଧର୍ମ, ଅନ୍ୟାୟ ଓ ପାପର କାଳିମା । ଏହିଭଳି ଧର୍ମର ଗ୍ଳାନି ସମୟରେ ଗୋଖଲେ ଜନ୍ମନେଇ ଜନ୍ମଭୂମିର ସେବାପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ଏ ସଂପର୍କରେ ଲକ୍ଷ୍ମୀନାରାୟଣ ଲେଖିଛନ୍ତି- "ଦେଶର ସାମୟିକ ଅବସ୍ଥିତି ଏବଂ ପାରିପାର୍ଶ୍ୱିକ ଅବସ୍ଥାନ ଯୁବକ ମନରେ ପ୍ରେରଣା ଆଣି ଅନେକ ସମୟରେ ତା'ର ଗତିପଥକୁ ପରିବର୍ତ୍ତିତ କରିଦିଏ । ଗୋଖଲେ ଯେତେବେଳେ ବି.ଏ. ଉପାଧି ଧାରଣ କରି ଯୌବନରେ ଅମିତ ପ୍ରେରଣା ପ୍ରାଣରେ ବହନ ପୂର୍ବକ କର୍ମକ୍ଷେତ୍ର ଆଡ଼କୁ ଦୃଷ୍ଟି ନିକ୍ଷେପ କରନ୍ତି, ସେତେବେଳ ସେ ଦେଖନ୍ତି କି ସମାଜ, କି ଶାସନ, କି ନୈତିକତା ସବୁଦିଗରେ ଭାରତର ପ୍ରାଣ ବଡ଼ ଦୁର୍ବଳ ହୋଇପଡ଼ିଛି । ତା'ର ପୁନରୁତ୍‌ଥାନ ପାଇଁ କେତେ ନୂତନ ଅନୁଷ୍ଠାନ ଆତ୍ମପ୍ରକାଶ କରୁଅଛି । ଏ ସବୁ ଦେଖି ତାଙ୍କର ଯୌବନ-ପୂତ ପ୍ରାଣରେ କି ଏକ କରୁଣ ସ୍ପନ୍ଦନ ବାଜି ଉଠିଲା।" (୪)

୧୮୮୫ରେ ଫାର୍ଗୁସନ କଲେଜରେ ଅଧ୍ୟାପକ ଭାବେ ନିଯୁକ୍ତ ହେଲେ । ସେଠାରେ ଶିକ୍ଷାକ୍ଷେତ୍ରରେ ସେ ଯେଉଁ ପାରଦର୍ଶିତା ଦେଖାଇଲେ, ସେଥିରୁ ତାଙ୍କର ପ୍ରଗାଢ଼ ଅଧ୍ୟବସାୟ ଓ ଅସାଧାରଣ ଧୀଶକ୍ତିର ପ୍ରମାଣ ମିଳିଥିଲା । ଇଂରାଜୀଠାରୁ ଗଣିତ ପର୍ଯ୍ୟନ୍ତ ଅନେକ ବିଷୟରେ ଛାତ୍ରମାନଙ୍କୁ ଶ୍ରେଣୀରେ ମନ୍ତ୍ରମୁଗ୍‌ଧ କରି ଶିକ୍ଷା ଦେଉଥିଲେ । ସେ କେବଳ ଶିକ୍ଷକ ବା ଅଧ୍ୟାପକ ନଥିଲେ, ବରଂ ସେ ଛାତ୍ରମାନଙ୍କୁ ସ୍ନେହ ଓ ଭ୍ରାତୃତ୍ୱର ନିଗଡ଼ ବନ୍ଧନରେ ବାନ୍ଧି ରଖିଥିଲେ । ଫଳରେ ଛାତ୍ରମାନଙ୍କର ତାଙ୍କ ଉପରେ ଅଗାଧ ବିଶ୍ୱାସ ରହିଥିଲା । ଗୋଖଲେଙ୍କ ଆଦର୍ଶକୁ ପ୍ରମାଣ କରି ଲେଖକ ଲେଖିଛନ୍ତି- "ଗୁରୁଜଗତର ସେ ଆଜି ଆଦର୍ଶ । ଆଜି ଯେଉଁମାନେ ଶିକ୍ଷାଦାନ ରୂପ ଦୁରୂହ କାର୍ଯ୍ୟ ହାତରେ ନେଇ ଅଛନ୍ତି ବା ନେବାକୁ ଯାଉଛନ୍ତି, ଯେଉଁମାନଙ୍କର ବ୍ୟକ୍ତିଗତ ପ୍ରଭାବ ଆମ୍ଭମାନଙ୍କ ସାମାଜିକ ଜୀବନ ଏବଂ ଜାତୀୟ ଚରିତକୁ ଭବିଷ୍ୟତରେ ସୁପଥରେ ବା କୁପଥରେ ପରିଚାଳିତ କରିବ, ସେମାନଙ୍କର କଥା ଥରେ ଭାବି ଦେଖିବା ଉଚିତ୍ ଯେ କେଉଁ ଆଦର୍ଶ ରଖି ସେମାନେ ଶିକ୍ଷାଦାନ କାର୍ଯ୍ୟରେ ବ୍ରତୀ ହୋଇଅଛନ୍ତି । ମହାମତି ଗୋଖଲେଙ୍କ ଶିକ୍ଷକ ଜୀବନ ସେମାନଙ୍କର ଆଦର୍ଶ ହେଉ, ଏହାହିଁ ଈଶ୍ୱରଙ୍କ ନିକଟରେ ବିନୀତ ପ୍ରାର୍ଥନା । (୫)

ଫାର୍ଗୁସନ କଲେଜରେ ଗୋଖଲେ ଯେତେଦିନ ଥିଲେ, ସେତେଦିନ ପର୍ଯ୍ୟନ୍ତ ସେ କେବଳ ଆଦର୍ଶ ଅଧ୍ୟାପକ ନଥିଲେ ବରଂ ଅନୁଷ୍ଠାନର ସର୍ବବିଧ ଉନ୍ନତି ପାଇଁ ସେ ମନପ୍ରାଣ ଢାଳି ଦେଇଥିଲେ । ଏପରିକି ତାଙ୍କ ପାଇଁ ଅନେକ ଛାତ୍ର ଏହି କଲେଜରେ ବିଦ୍ୟାର୍ଥୀ ରୂପେ ପ୍ରବେଶ କରିଥିଲେ ।

ସେହି ଯୁବକ ସମୟରେ ଗୋଖଲେ ପୁନାର ସାର୍ବଜନୀନ ସଭାରେ ଯୋଗ ଦେଇଥିଲେ । ମୋମ୍ବାଇ ପ୍ରେସିଡେନ୍‌ସିରେ ମହାଦେବ ଗୋବିନ୍ଦ ରାଣାଡ଼େ ଏକ ସମିତି ଗଠନ କଲେ । ସେହି ସମିତି ପକ୍ଷରୁ ଖଣ୍ଡିଏ ତ୍ରୈମାସିକ ପତ୍ରିକା ପ୍ରକାଶିତ ହେଉଥିଲା । ସେଥିରେ ଭାରତର ରାଜନୀତି ଓ ଅର୍ଥନୀତି ପ୍ରଭୃତି ସୂକ୍ଷ୍ମ ଓ ଜଟିଳ ସମସ୍ୟାମାନଙ୍କର ସମାଲୋଚନା କରାଯାଉଥିଲେ । ୧୮୮୭ରେ ଉକ୍ତ ପତ୍ରିକାର ସହ-ସଂପାଦକ ହେଲେ ଗୋଖଲେ । ପରବର୍ତ୍ତୀ ସମୟରେ ରାଣଡ଼େ ସଂପୂର୍ଣ୍ଣ ଦାୟିତ୍ୱ ଗୋଖଲେଙ୍କୁ ଦେଇଥିଲେ । ସେ ସପର୍କରେ ଲେଖକ ଲେଖିଛନ୍ତି- "ପ୍ରକୃତରେ ଜଣେ ୨୧ ବର୍ଷର ଯୁବକ ସେତେବେଳେ ଯେପରି ଦକ୍ଷତା ଏବଂ ଦୂରଦର୍ଶିତାର ସହିତ ଦେଶର ନାନାବିଧ ଜଟିଳ ସମସ୍ୟାର ଯୁକ୍ତିଯୁକ୍ତ ଅବଧାରଣାମାନ ପତ୍ରିକାରେ ଆଲୋଚନା କରୁଥିଲେ, ତାହା ଗୁରୁ ରାଣାଡ଼େଙ୍କ ପକ୍ଷରେ ତଥା ଦେଶର ଯୁବକ ସଂପ୍ରଦାୟଙ୍କ ପକ୍ଷରେ ଅଭାବନୀୟ ଗୌରବର ବିଷୟ କହିଲେ ଚଳେ । ଏହି ସଂପାଦନତ୍ୱ ତାଙ୍କ ଜୀବନରେ ଏକ ବିଶିଷ୍ଟ ସ୍ମରଣୀୟ ଘଟଣା, କାରଣ ଭାବୀକର୍ମଠତାର ଅଭିନୟ ପ୍ରଦର୍ଶନ ପାଇଁ ତାଙ୍କ ଜୀବନ ଯବନିକାର ପ୍ରଥମ ଉତ୍‌ଥାନ ଏହିଠାରେ ସ୍ୱତଃ ସଂଘଟିତ ହୋଇଥିଲା । (୬)

ଗୋଖଲେ ସଦାସର୍ବଦା ନୀତିବୋଧ ଉପରେ ଗୁରୁତ୍ୱ ଦେଉଥିଲେ । ନୀତି ପରାୟଣତା ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ଜୀବନର ସେହି ନୈତିକ ଶିକ୍ଷାକୁ ରାଜନୀତି କ୍ଷେତ୍ରରେ ପ୍ରଧାନ ଓ ପ୍ରଥମ ଶିକ୍ଷା ବୋଲି ମନେ କରୁଥିଲେ । ତାଙ୍କ ବିଚାରରେ ଯେ ପର୍ଯ୍ୟନ୍ତ ଜାତୀୟ ଚରିତ୍ର ନୈତିକତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ଭାରତୀୟମାନେ ଉନ୍ନତ ହୋଇପାରିବେ ନାହିଁ ବୋଲି ସେ କହୁଥିଲେ । ପୁନଶ୍ଚ ଗୋଖଲେ ଗବେଷଣାକରି ଜାଣିଥିଲେ ଭାରତକୁ ଜାଗ୍ରତ କରିବାକୁ ହେଲେ ଆଶ୍ରମର ପୂତପବିତ୍ର ଭାବ ସୃଷ୍ଟି କରିବାକୁ ପଡ଼ିବ ।

ଗୋଖେଲ ଯେତେବେଳେ ବିଦେଶରେ ଥିଲେ, ସେହି ସମୟରେ ପ୍ଲେଗ୍ ରୋଗୀ ଚିହ୍ନଟ ନାମରେ ଇଂରେଜ ସେନାମାନେ ପରିବାରରେ ପଶି ଝିଅବୋହୂଙ୍କ ପ୍ରତି ଅଶାଳୀନ ବ୍ୟବହାର କଲେ, ଫଳରେ ଆମ ଦେଶର ଲୋକମାନଙ୍କ ଭିତରେ ଅସନ୍ତୋଷ ଦେଖାଗଲା । ଗୋଖଲେଙ୍କ ପାଖରେ ଏ ଖବର ପହଞ୍ଚିବାରୁ ସେ ବ୍ୟଥିତ ହୋଇପଡ଼ିଥିଲେ ।" ପ୍ଲେଗ୍ ରୋଗ ଭଗବାନଙ୍କର ଅଭିଶାପ ହେଲେ ବି ମାନବର ଅତ୍ୟାଚାରକୁ ସେ ସହ୍ୟ କରିପାରିଲେ ନାହିଁ, ଫଳରେ ସେ ବିଲାତରେ ସମ୍ବାଦପତ୍ରରେ ବିଲାତ ସୈନ୍ୟଙ୍କ ବ୍ୟବହାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ପରବର୍ତ୍ତୀ ସମୟରେ ସେ ଏଭଳି କାର୍ଯ୍ୟ ପାଇଁ ଅନୁତାପ କରିଥିଲେ । (୭) ୧୯୦୦-୧୯୦୧ରେ ସେ ମୋମ୍ବାଇ ବ୍ୟବସ୍ଥାପକ ସଭାର ସଭ୍ୟରୂପେ ନିର୍ବାଚିତ ହୋଇଥିଲେ ଏବଂ ଏହି ସଭାର ଗୁରୁଦାୟିତ୍ୱ ଖୁବ୍ ନିଷ୍ଠାର ସହିତ ସଂପନ୍ନ କରିଥିଲେ । ସମାଜ ସଂସ୍କାରକ ଭାବରେ ଗୋଖଲେ ନିଜ ଜୀବନର ବଳିଷ୍ଠ ବ୍ୟକ୍ତିତ୍ୱକୁ ପ୍ରକାଶ କରିଥିଲେ । ସେ ଜାତିକୁ ନେଇ ଅହଂକାର କରିନଥିଲେ ବରଂ ଜାତିକୁ ଧ୍ୱଂସ କରି ସମଗ୍ର ଭାରତକୁ ଏକ ମାନବିକତାର ସୂତ୍ରରେ ଆବଦ୍ଧ କରିବାକୁ ଚେଷ୍ଟା କରିଥିଲେ । ସେଥିପାଇଁ ବିଲାତରୁ ଫେରି ସେ ପ୍ରାୟଶ୍ଚିତ୍ତ କରିନଥିଲେ ।

ରାଜନୀତିକ ଭାବରେ, ଉନ୍ନତ ମାନବିକ ଅନୁଚିନ୍ତାରେ, ଗୋଖଲେ ନିଜର ବଳିଷ୍ଠ ବିଚାରଧାରାର ପରିଚୟ ଦେଇଥିଲେ। ଏପରିକି ସେ ଇଚ୍ଛାମୃତ୍ୟୁ ଭଳି, ଜୀବନର ଅନ୍ତିମକ୍ଷଣକୁ ଅନୁମାନ କରିନେଇଥିଲେ । ତାଙ୍କ ଉଚ୍ଚ ମାନବିକତାକୁ ମୂଲ୍ୟାୟନ କରି ସମ୍ରାଟ ପଞ୍ଚମ ଜର୍ଜ, ଲର୍ଡ ସଭାରେ ମହାମାନ୍ୟ ମାରକ୍ୱିସ ଅଫ କ୍ରିଉ, ଦିଲ୍ଲୀର ବ୍ୟବସ୍ଥାପକ ସଭାରେ ଲର୍ଡ଼ ହାର୍ଡିଞ୍ଜ, ଲର୍ଡ଼ କର୍ଜନ, ଶ୍ରୀକୃଷ୍ଣ ଗୁପ୍ତ, କେ.ସି.ଆଇ.ଏସ୍., ମହାମାନ୍ୟ ଇ.ଏସ୍., ମଣ୍ଟାଗୁ, ସରଫିରୋଜ ସାହା ମେହେତା, ଏଇଚ.ଏସ.ଏଲ. ପୋଲକ, ଲୋକମାନ୍ୟ ତିଳକ, ପଣ୍ଡିତ ମୋତିଲାଲ ନେହେରୁ ଉଚ୍ଚକୋଟୀର ମନ୍ତବ୍ୟ ଦେଇଥିଲେ । ସେପରି ମନ୍ତବ୍ୟ, ଗୋଖଲେଙ୍କ ଉଚ୍ଚ ଆଦର୍ଶ ଜୀବନର ପରିଚୟ ଦେଇଥାଏ ।

ପାଦଟିକା:

୧. ସାରସ୍ୱତ ସାଧକ, ଲକ୍ଷ୍ମୀନାରାୟଣ ସାହୁ, ଡ. ରମାକାନ୍ତ ବେହେରା, ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ସମ୍ପାଦନା- ଡ. ମନ୍ମଥ ନାଥ ପ୍ରଧାନ, ପ୍ରକାଶକ- ଫକୀରମୋହନ ବିଶ୍ୱବିଦ୍ୟାଳୟ, ପୃ.୮୧ ।

୨. ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ ।

୩. ସାରସ୍ୱତ ସାଧକ, ଲକ୍ଷ୍ମୀନାରାୟଣ ସାହୁ, ଡ. ରମାକାନ୍ତ ବେହେରା, ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ସମ୍ପାଦନା- ଡ. ମନ୍ମଥ ନାଥ ପ୍ରଧାନ, ପ୍ରକାଶକ- ଫକୀରମୋହନ ବିଶ୍ୱବିଦ୍ୟାଳୟ, ପୃ. ୧୦୫ ।

୪. ସାରସ୍ୱତ ସାଧକ- ଲକ୍ଷ୍ମୀନାରାୟଣ ସାହୁ- ଡ. ରମାକାନ୍ତ ବେହେରା, ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ସମ୍ପାଦନା- ଡ. ମନ୍ମଥ ନାଥ ପ୍ରଧାନ, ପ୍ରକାଶକ- ଫକୀରମୋହନ ବିଶ୍ୱବିଦ୍ୟାଳୟ, ପୃ. ୧୦୭ ।

୫. ସାରସ୍ୱତ ସାଧକ- ଲକ୍ଷ୍ମୀନାରାୟଣ ସାହୁ- ଡ. ରମାକାନ୍ତ ବେହେରା, ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ସମ୍ପାଦନା- ଡ. ମନ୍ମଥ ନାଥ ପ୍ରଧାନ, ପ୍ରକାଶକ- ଫକୀରମୋହନ ବିଶ୍ୱବିଦ୍ୟାଳୟ, ପୃ. ୧୦୯ ।

୬. ନୃସିହ ଚରଣ ସାହୁ- ସେବକ ଲକ୍ଷ୍ମୀନାରାୟଣ - ନାଳନ୍ଦା ପ୍ରକାଶନୀ ।

୭. ମୋ ବୀର ବୁହା ଜୀବନ, ଲକ୍ଷ୍ମୀନାରାୟଣ ସାହୁ, ଓଡ଼ିଶା ବୁକ୍‌ଷ୍ଟୋର ।